# କୁନାର ଚିଠି

ଲେଖକ : ଗୁରୁକିଶୋର ପଣ୍ଡା

## ମନ୍ତବ୍ୟ –

"କୁନାର ଗପ" ବହି ଖଣ୍ଡିକ କଳାହାଣ୍ଡି ଜିଲ୍ଲାର ବର୍ଣ୍ଣମାଳାଗୀପର ମହାନ ଉପରେ । କବି ଆପଣା ଅନୁଭୂତିକୁ କାଢ଼ି ସାଧାରଣ ପାଠକଙ୍କ ଅନୁଭୂତି ସଙ୍ଗେ ସମାନ କରି ମିଳାଇଦେଇ ପାରିଛନ୍ତି । "କୁନାର ଗପ"କୁ ଆଞ୍ଚଳିକ ବୋଲି କୁହାଗଲେବି ତାହା ସବୁ ଅଞ୍ଚଳର ହୋଇ ପଡ଼ୁଛି । ସବୁ ଅଞ୍ଚଳର "କୁନା" ଯେମିତିକି ଏମିତି ଗପ ଏମିତି କଥା ଲେଖୁଛନ୍ତି ଆଜି ହେଉଛି ।

କବିଙ୍କୁ ଯଦି "ପଲ୍ଲୀକବି" କୁହାଯାଏ ତାହାହେଲେ ଆମ ଦେଶଟା ପଲ୍ଲୀ ପ୍ରଧାନ ହୋଇଥିବାରୁ ତାଙ୍କୁ ଜଣେ ପ୍ରଧାନ କବି କହିବା ଦୋଷାବହ ନୁହେଁ ।

ବାଳକ ବାଳିକାଙ୍କ ଉଦ୍ଦେଶ୍ୟରେ କବିଙ୍କ ଏହି ସାର୍ଥକ ସୃଷ୍ଟି ଅଧିକ ଆଦୃତ ହେଉ ଏହାହିଁ ମୋର କାମନା ।

ଶ୍ରୀ ଜାଳନ୍ଧରୀ ଚରଣ ପାଣିଗ୍ରାହୀ

ତା ୮-୧-୭୨

କବି ବହୁକାଳ ଶିକ୍ଷକତା କରି ପିଲଙ୍କ ମନ ବୁଝିବାରେ ସ୍ୱତନ୍ତ୍ର ଦକ୍ଷତା ହାସଲ କରିଛନ୍ତି । ପିଲଙ୍କ ମନକୁ ଦେଖିଲଭଳି ଭଙ୍ଗୀ ଓ ଭାଷାରେ ଲିଖିତ କବିତା ସବୁ ଏହାର ଜ୍ୱଳନ୍ତ ପ୍ରମାଣ ଦିଏ । କବିତା ଗୁଡ଼ିକ ପିଲଙ୍କୁ ବେଶ ଆନନ୍ଦ ଦେବ ଓ ଗୋଟିଏ ପଢ଼ିଲେ ଅନ୍ୟଟି ପଢିବାକୁ ଆକୃଷ୍ଟ କରିବ । ଶିଶୁ ସାହିତ୍ୟ ସୃଷ୍ଟିରେ କବି ପଣ୍ଡାଙ୍କର ଏହା ପ୍ରଥମ ଅବଦାନ । ଏହାପରି ସେ ଅନେକ ପୁସ୍ତକ ରଚନା କରିବେ ବୋଲି ଆଶାକରୁଁ ।

ଦୈନିକ "ସମାଜ"

ତା ୮-୧୧-୭୨

କବି ପଦ୍ମ ଖଣ୍ଡି କଳାହାଣ୍ଡିଆ ହୋଇଥାନ୍ତେ ତେବେ ସେ ଯେପରି ଭାବରେ ଓଡ଼ିଆ ଭାଷାକୁ ସାବଲୀଳ ରୀତିରେ ପ୍ରକାଶ କରି ପାରିଛନ୍ତି ସେଥିପାଇଁ କବିଙ୍କୁ ପ୍ରଶଂସା କରିବା କଥା ।

ଶ୍ରୀ ମାୟାଧର ମାନସିଂହ
ତା ୨୩-୧-୭୨

ବହିଟିର ସମସ୍ତ ଛନ୍ଦ ସମସ୍ତ ପଙ୍କ୍ତି ଯମୁନାର ଉଚ୍ଛଳ ଜଳଧାରାପରି ସରଳ ତରଳ ହୋଇ ପାରିଛି । କେଉଁଠାରେ ଶ୍ୱାସରୁଦ୍ଧ ହେବା ଅଥବା ଅଟକି ଯିବାର ଆଶଙ୍କା ନାହିଁ । ସବୁଠାରୁ ମୁଁ ତନ୍ମୟ ହେଲି "କୁନାର ଗଠି" "ଶଙ୍ଖୀ ବନ୍ଧୁଣ୍ଡ" "ଓରେ ବୋରେ ତାନା ନାନା"ର ଅଭିବ୍ୟକ୍ତିରେ । ଏ ଗୁଡ଼ିକ କବିଙ୍କ ପ୍ରତିଭାର ଅଭିବ୍ୟକ୍ତି ଓ ଆତ୍ମ ପ୍ରକାଶ ।

ମୋଟାମୋଟି "କୁନାର ଗଠି" ବହି ଖଣ୍ଡି ନୂତନ ଶିଶୁ ସାହିତ୍ୟର ଏକ ଜାଜ୍ୱଲ୍ୟମାନ ଦୀପଦଣ୍ଡି । ଏହା ହୃଦୟରେ ଧୂଳିର ଅବକାଶ ରଖେନାହିଁ । ରୋମନ୍ଥନ କାଦର ଧାର ଧାରେ ନାହିଁ । ସର୍ବୋପରି ହୃଦୟର ଉଚ୍ଛଳ ଆନନ୍ଦ ଉଚ୍ଛ୍ୱାସକୁ ଜାବୁଡ଼ି ଧରିବାର ଅପପ୍ରୟାସ କରେ ନାହିଁ । ଏ ଲେଖାର ଶୈଳୀ ଗିରି-ନିର୍ଝରିଣୀର ବେଗପରି ଦ୍ରୁତ ଅଥଚ ପୂର୍ଣ୍ଣଗର୍ଭା ନଦୀର ଉଦାର ଗମ୍ଭୀର ଓ ପ୍ରଶାନ୍ତ ଗତିପରି ହୃଦୟଗ୍ରାହୀ ।

ଶ୍ରୀ ପରଶୁରାମ ମୁଣ୍ଡ
ତା ୨୨-୧୧-୭୧

# ଜୁନାର ଚିଠି



ରଚୟିତା!

Writer
Rajkishor Panda
At [illegible], Kasibahal, (Kld)

# ସୂଚୀପତ୍ର







# କୁନାର ରଥ

ଜୁହାର କରୁଛି ତୋ ପୁଅ କୁନୁ
ବୋଉଲେ ମୋର !
ପାଇଲି ତୋ'ଚିଠି ଦେଲା ଫଗୁନୁ
ବୋଉଲେ ମୋର !
ପଇସା ଆଠ'ଣା ଥିଲୁ ପଠାଇ
ବୋଉଲେ ମୋର !
ଲୁଗୁଇଛି ଭାଇ ଜାଣନ୍ତି ନାହିଁ
ବୋଉ ଲେ ମୋର !
କୁନି ପାଇଁ ନେବ ଫୁଲ କଣ୍ଢେଇ
ବୋଉଲେ ମୋର !
ଜାଣିଲେ ଭଇନା ନେବେ ଛଡେଇ
ବୋଉଲେ ମୋର !
ପଠାଇବୁ ଗାଡ଼ି ବାପାଙ୍କୁ କହି
ବୋଉଲେ ମୋର !
ଏଠି ଜମା ମୁହିଁ ରହିବି ନାହିଁ
ବୋଉଲେ ମୋର !
ବସିଛି ଦୋକାନେ କେତେ ମିଠେଇ
ବୋଉଲେ ମୋର !

ଖେଳନା ଦିଅନ୍ତି ନାହିଁ ଚଖେଇ
ବୋଉଲେ ମୋର !
ଝାଲ ଚୂଡ଼ା ଭଜା ସଞ୍ଜ ସକାଳେ
ବୋଉଲେ ମୋର !
ଦୁଧ ଟିକେ ମିଳେ ନାହିଁ ଅକାଳେ
ବୋଉଲେ ମୋର !
ଅଧ ରାତ ଯାକେ ପଢ଼ା ଧିଆନ
ବୋଉଲେ ମୋର !
ଢୁମାଇଲେ ଆଖି ମୋଡ଼ନ୍ତି କାନ
ବୋଉଲେ ମୋର !
ପଚାରନ୍ତି ପାଠ ଛୁହ ଛୁହା
ବୋଉଲେ ମୋର !
ଭୁଲ ହେଲେ ଟିକେ ବଡ଼ ଅଡୁଆ
ବୋଉଲେ ମୋର !
'ବୋକା' 'ଗଧ' ବୋଲି ଦିଅନ୍ତି ଗାଳି
ବୋଉଲେ ମୋର !
ରହିବନି ଏଠି ଯିବି ମୁଁ ଚାଲି
ବୋଉଲେ ମୋର !
ଖେଳେ ନ ହେଉଣୁ ବାଜଇ ଘଣ୍ଟା
ବୋଉଲେ ମୋର !
ବଗିଚାର କାମେ ଭାଙ୍ଗଇ ଅଣ୍ଟା
ବୋଉଲେ ମୋର !
ହାତୁ ଆଉଁ ମାଟି ଧରଣ କୋଡ଼ି
ବୋଉଲେ ମୋର !
ହାତ ମାଜି ବସି ଗଲଣି ଫଡ଼ି
ବୋଉଲେ ମୋର !

କି କହିବ ବୋଉ    ମେସ୍ତ୍ରର ଗପ
ବୋଉଲେ ମୋର !
ଗୋଡ଼ ଥାଲୁବାଲୁ    ମାଙ୍କଡ ଦାନ୍ତ
ବୋଉଲେ ମୋର !
ଡାଲି କି ଅମ୍ବିଳ    ନୁହଇ କାଞ୍ଜି
ବୋଉଲେ ମୋର !
ଚଳେ ଦୁଳୁ ଦୁଳୁ    ଉପରେ ପାଣି
ବୋଉଲେ ମୋର !
ଚରକାର ବୋଲ    ଏତକି ଠିକେ
ବୋଉଲେ ମୋର !
ସଭଯାଏ ସବୁ    ଏକାଥରେକେ
ବୋଉଲେ ମୋର !
ବୋଉଙ୍କ ମାଷ୍ଟ୍ରେ    ବଡ଼ ଗୁଲାଖି
ବୋଉଲେ ମୋର !
ମିଛରେ ଦେଖାନ୍ତି    ଏଡେଡେ ଆଖି
ବୋଉଲେ ମୋର !
ଏତେ ଚୁଟି ଧର    ପଣ୍ଡିତ ବୁଢା
ବୋଉଲେ ମୋର !
ଏତେ ପାଠ କର    ପିଟନ୍ତି କୋଡ଼ା
ବୋଉଲେ ମୋର !
ଇଂରାଜୀ ପାଠ    ଇସ୍କୁଲ ପଢା
ବୋଉଲେ ମୋର !
କ୍ୟାଟ୍, ମ୍ୟାଟ୍, ହ୍ୟାଟ୍    ବିଲକୁଲ୍ ଜଡା
ବୋଉଲେ ମୋର,

ଗଣିତ ପାଠ'ରେ ଘର ମୁଣ୍ଡିଲ
ବୋଉଲୋ ମୋର !
ଗୃହ ସତା ହୋଇ ଯାଏ ଷୋହଳ
ବୋଉଲୋ ମୋର !
ଭଉ ପାଠଟିଏ ଘଷ୍ଟାଘଷା
ବୋଉଲୋ ମୋର !
ଖାତେଙ୍ଗା, ଯାତେଙ୍ଗା, ଲଗଇ ହସା
ବୋଉଲୋ ମୋର !
ଫୁଲ୍ ପେଣ୍ଟଟିଏ ଦେଇ ସିଲେଇ
ବୋଉଲୋ ମୋର !
କହିବୁ ବା'ପାଙ୍କୁ ଦେବେ ପଠେଇ
ବୋଉଲୋ ମୋର !
ଋଣ ଅଛି ବୋଉ କହୁଛି, ସବେ
ବୋଉଲୋ ମୋର !
ମନେ ମକାଇବୁ ନାହିଁ ତୁ ମୋତେ
ବୋଉଲୋ ମୋର !
କହିବୁ ଜୁହାର ମୋର ବାପାଙ୍କୁ
ବୋଉଲୋ ମୋର !
ଛୁଟି ହେଲେ ପିନା ଯିବ ଘରକୁ
ବୋଉଲୋ ମୋର !



# ଓରେ ରେରେ ତାନା ନାନା

ସୋଇପଡ଼ ମୋର ଲବଙ୍ଗ ଲତା !
"ସାରଙ୍ଗୀ ସୂତା ଲୋ ଗଜ ମୁକୁତା"
ସୁନେଲି ଫୁଲକୁ ରୂପେଲି କଷି
ମୋ ଝୁଅ ଝୁଲିବ ଦୋଳରେ ବସି,
 ରଙ୍କ ରତନ ମୋ ହୀରା,
ଅବୁଝା ନୁହେ ମୋ ସୁନାଝିଅଟିଲୋ
 କପାଳ-ସିନ୍ଦୂର-ଗିରା ।
ଓରେ-ରେରେ-ତାନା-ନାନା-ଝୁମୁକ୍-ଝାଏଁ-ଦୁମ୍

କପାଳ ସିନ୍ଦୂର ପୁନିଅଁ ଜହ୍ନ,
ମୋ ଝିଅ ଖାଇବ ଗାଲ ତଅଣ ।
କଳୁ କଳିଆ ଲୋ ମରଗ ତମ୍ବା
ମୋ ମଣି ହାତରେ ପଡ଼ିବ ଧରା,
 ଭଟ୍ରେଇ ଖେଳିବ ସାଜ ।
ଅବୁଝା ନୁହେ ମୋ ସୁନା ଝିଅଟିଲୋ,
 ସୋଇ ଦେବ ଆଜି ବୁଝ ।
ଓରେ-ରେରେ-ତାନା-ନାନା-ଝୁମୁକ୍-ଝାଏଁ-ଦୁମ୍

ବାପା ଯାଉଛନ୍ତି ଦରିଆ ପାରି
ସାତ ବୋଇତରେ ସଉଦା ଭରି ।
ପରି ରାଇଜର ସୁନା ଫରୁଆ,
ଆଣିବେ ତୋପାଇଁ ବାସ ମରୁଆ ।
ଆଣିବେ ରଜାର ପୁଅ,
ବର କନିଆ ଲୋ ସାଜ ଖେଳୁଥିବୁ
ଶୋଇପଡ଼ ଟିକି ଝିଅ ।
ଓରେ ରେରେ-ତାନା-ନାନା-ଝୁମୁକ୍-ଝାଏଁ-ଦୁମ୍
ମାମୁଟି ତୋଟେଲୋ ଦେଶର ନେତା,
ରଜା ମହାରଜା ତୋଡ଼ ଚଳେ ନା,
ଝୁମୁକ କଠାଉ ବାଜେଣି ଜୋତା,
ଛାଇଞ୍ଚ ମାଳୀ ଲୋ ସୁନେଲି ସୂତା
ପିନ୍ଧାଇବ ମାମୁ ଆଣି,
ଝୁମୁରୁ ଝୁମୁରୁ ନାଚ ଖେଳିବୁଲେ
ଶୋଇପଡ଼ ଧନ ମଣି ।
ଓରେ-ରେରେ-ତାନା-ନାନା-ଝୁମୁକ୍-ଝାଏଁ ଦୁମ୍
ଦେଶେ ସେନାପତି ତୋ ଭାଇ ହଳୀ,
ଗୁଳିରେ ମେଦିନୀ ଯାଏ ଦୋହଲି,
ବୈରୀମାନ ଦେଶେ କରି ଲଢ଼ାଇ,
ରଜା ଜରିପାଗ ଆଣି ଛଡ଼ାଇ,
ପିନ୍ଧାଇବ ଦିଇଁ ଜାମା ।
ତରି ମଝି ଜହ୍ନ ପରା ଝଟକିବୁ
ଶୋଇ ପଡ଼ ମୋର ମାଆଁ ।
ଓରେ-ରେରେ-ତାନା-ନାନା-ଝୁମୁକୁ-ଝାଏଁ-ଦୁମ୍

[ ୭ ]

କାଳୀ କଟି କଟି ଅନ୍ଧାର ରାତ
ଅନ୍ଧାର ରାତିକି ଦୀପ ଆଲତ,
କୁନି ଝି ଅର ଲେ ଆଖି କଜଳ
ଅନ୍ଧାର ଘରକୁ ଝିଅ ଉଜ୍ଜଳ
ଯାଆ କୋକୋ ଯାଆ ଯାଆ,
ନାକ କାନ ମୋଡ଼ି ଦେବ ଦଉଡ଼ି ଲୋ
ଶୋଇପଡ଼ ମୋର ମାଆଁ ।
ଓଁରେ-ରେରେ-ଭାନା-ନାନା-ଝୁଁ ମୁକ୍ ଝାଏଁ-ନ୍ନୁମ୍ ।



## "କସ୍ତି ଫୁଲ ଠୋ'ଠା"

"କସ୍ତି ଫୁଲ ଠୋ'ଠା
କାକୁଡ଼ି ଫୁଲ ଠୋ'ଠା" ।
ହୁଡୁ ଖେଳିବୁ କି        ଲୁଡୁ ଖେଳିବୁ
ବେଳ ନ ବୁଡୁଣୁ କହୁଥା ।
ବକର ବକର ହୋଇବୁ ନାଇଁ
କାନମୋଡ଼ି ଦେବେ ମଝିଆ ଭାଇ ।
ସାନ୍ତ୍ର ପତର ଛତା କି        ଦୁଦୁରା ଫୁଲ ଛତା
ଢୋଲିଆ ବୁଢ଼ା ବଜାଏ ଢୋଲ
ତାଧିନ ତାଧିନ ତା ।
"କସ୍ତି ଫୁଲ ଠୋ'ଠା" ।

ଢୋଲକି ବାଜେ ଢୁମ୍ ଢୁମ୍
ମାଦଳ ବାଜେ ଧୁମ୍
ମଙ୍ଗୁଳି ପୁଅ        କରୁଛି ନାଚ
ତାକ୍ ଡୁମା ଡୁମ୍ ଡୁମ୍
ସେବ ନାମର        ସରାଗ ଭରି
ଯାଉଁଳୀ କାଚ ଥୋଇଥା
"କସ୍ତି ଫୁଲ ଠୋ'ଠା" ।

ଝିଟି ଝିଟି ମିଟି ମିଟି ଥିରି ଥିରି ବତାସ
ସାକୁଲେଇ ମାକୁଟିଲେଇ କଥା କହୁ ସରସ
କଲରା ଫୁଲିଆ ବାଡ଼ ଲେ ସରୁ ସରୁ ଲତା
ଦନେଇ ଭାଇ ବଜାଏ ତାଲ
ତାଥେଇ ତାଥେଇ ତା ।
ମରୁଆ ନାନୀ    ବାହା ଘରକୁ
ରେଶମୀ ଶାଢ଼ୀ ଥୋଇ ଥା
ଜହ୍ନି ଫୁଲ୍ ଠୋ'ଠା ।

ଲୁଙ୍ଗୁରୁ ଘୁଙ୍ଗୁରୁ ଡେଙ୍ଗରା
ବାଡ଼ି ଠୁଙ୍ଗ୍ ଠୁଙ୍ଗ୍ ଧାଉଁଚ
ପିଣ୍ଡା ତଲ ରୁଖା ଲେ    ମଞ୍ଜାତଲ ଧୂଳି
ଗୁଲ ସଙ୍ଗାତ ସଭେଏଁ ପିବା
ସମ୍ବଲପୁର ବୁଲି
ଆଜିର ଖେଳ    ଏତକି ଥାଉ
କାଲିବା ସଞ୍ଜ ବଇଠା
ଜହ୍ନି ଫୁଲ ଠୋ'ଠା ।



## "ଧୋରେ ବାୟା ଧୋ"

ବଳଦ ଘଣ୍ଟି ଟୁଂ, ଟାଂ ମହୁଷୀ-ଟିପା ଠୋ,
ଲଲ୍ ଟହ ଟହ ଗୋଧୂଳି ସଞ୍ଜ
"ଧୋରେ ବାୟା ଧୋ"
(୧) ଏର୍ ର୍…ଡ଼କାଙ୍ଗ୍ ଝପର ଝପର ଡ଼ ଡ଼ଂ ଡ଼ଂ-ଝାଏଁ ।

ରଜା ଘର ଝିଅ ଅବଲାବାଳୀ,
ନାକେ ଫୁଲଗୁଣା କାନଅ ମାଳୀ,
ନାଲ ଝଗ୍ରୀଫୁଲ ଖୋଷାରେ ଖୋସି,
ବାଜେଣି ପଇଁଛ କାଖେ କଳସୀ,
ଗୋହିର ଛୁଠରେ ମିଳେ ଚମକ,
ଶିଥିଳ ପାଦଟା ଯାଏ ଥମକ

ଜଳା ବାଦଲେ ଖେଳେ ବିଜୁଳି
ବାଲୁଆ ଡାକେ ହୋ ।
ବଳଦ ଘଣ୍ଟି ଟୁଂ-ଟାଂ-ମହୁଷୀ-ଟିପା ଠୋ…
ଏର୍ ର୍…ଡ଼ଙ୍କାଙ୍ଗ୍ ଝପର ଝପର
ଡ଼ ଡ଼ଂ…ଡ଼ଂ…ଝାଏଁ ।

କଳିଙ୍ଗର ଟୋକା ପୁଅ ବାପୁଡ଼ା,
ଆଣିଲା ଉଡ଼ାଇ ପବନ ଘୋଡ଼ା ।
ମୁଣ୍ଡେ ଜରିପାଗ ଝାଲର ଦିଆ,
ରେଶମୀ କୁରୁତା ଝଲ ମଲିଆ,
ଉଠାଇ ନେଲା ସେ ଏକା ପଲକେ
ରଙ୍ଗା ଝିଅ ଗୋଟି ଦିଗ ଝଲକେ ।
କୁକୁର ସବୁ ଲାଙ୍ଗୁଳ ଟାଙ୍କି
(୧) ଭୁକିଲେ ଭୋ···ଭୋ···।
ଏରର୍··· ଡ଼ଙ୍କାଙ୍ଗ୍ ଝପର ଝପର
ଢ଼ ଢ଼ଂ-ଢ଼ଂ-ଝାଏଁ ।

ଖା'ଇ କୋରଡ଼ା, ପବନ ଘୋଡ଼ା,
ଫିଙ୍ଗିଲା ଗୋଡ଼ ଯୋଡ଼ାକୁ ଯୋଡ଼ା ।
ବିଜୁଳି ପରି ଡେଇଁ ବାଦଲ,
ଗାଆଁ ପିଲାଏ ପିଟି ମାଦଳ,
ଡାକ୍ ଡୁମା ଡୁମ୍ ନାଚ ନାଚକା
ଧରିଲେ ଠୋଓ···ଠୋ·· ।
ବଳଦ ଘଣ୍ଟି ଟୁଂ-ଟାଂ ମହିଷୀ ହେପା ଠୋ ।
ଏରର୍···ଢଙ୍କାଙ୍ଗ୍ ଝପର ଝପର
ଢ଼ ଢ଼ଂ-ଢ଼ଂ-ଝାଏଁ ।



---

ମୀନା ବଜାର ସଂଖ୍ୟା 'ପ୍ରଜାତନ୍ତ୍ର'ରେ ପ୍ରକାଶିତ ।
(୧) ଭୁକିଲେ—ବୋବାଇଲେ

# ଶଙ୍ଖୀ ବରାଡ

ନୂଆବୋହୂ ଯେବ ପୋଷିଥିଲୁ ବରାଡ
ନାଆଁଟା ନେଉ ।
ଧୋବ ଫର ଫର ଚନ୍ଦ୍ରକ ଚକଣ
ସିଦ୍ଧାଣୀ ସେଉ ।
ଆଇଁଷ-ଶୁଖୁଆ-ଦହି-ଦୁଧ-ସର,
ପାଇଁକି ତା ଡଭ—ଲାଳ ସର ସର,
ବଡ ଗେହେଲଇ ସେ ନ ରୁଚେ ପାଟିକି
ନୁଖୁରା ଭାତ
ସୁବିଧା ପାଇଲେ (୧) ହଡପ କରଇ
ଘିଅ ନବାତ ।
ଡଆରନ୍ତି ଶାଶୁ ଥରୁ ଥର କରି
“ ହଇଲୋ ଦେବ !
ନଜର ନଦେଲେ ସବାଖାଇ ବାନ୍ତି
ସବୁ ସାରବ ।
(୧) ଗବଡ ଠେକିଟା ଥୋଇଦେ ସଜାଡ଼ି,
ଆଉ ଘଣ୍ଟିତଳେ ନ ଦେଖୁ ବରାଡ଼,

---

(୧) ଠେକି—ଛୋଟ ମାଟିପାତ୍ର
ହଡପ—ଆତ୍ମସାତ୍ କରିବା

କହୁଛି ନାରଣ          ଆସିବ ପର୍ବ ଲୋ ?
ନାକ ସାହେବ,
ରଖିଥା ଯତନେ          ମନ ଊଣା ହେଲେ
ବୋଲଣା ଦେବ ।"

ଶାଶୂ ପାଇଁ ପାନ          ସଙ୍ଗି ନୂଆବୋହୂ
ଆସଇ ଧୀରେ,
ଧଡ୍ ଧାଡ୍ କର          ଶୁଭିଲା ଶବଦ
ଗମ୍ଭିରୀ ଘରେ,
ଶାଶୂ ଦେହେ ପାନ ଫିଙ୍ଗି ତରତରେ;
(୧) ଅଠରଛନିଆ ଲେଉଟିଲା ଘରେ ।

ଭମ ଭମ ଶାଶୂ          ନିରେଖେ ବୋହୂର
ଅଲଣା ଘିତ,
ଦମ୍ ଦମ୍ ଘୃତ          ବୋହୂର ଦେଖିଣ
ଶଙ୍ଖୀ କାରଛ ।

ଭଙ୍ଗେ ଚୂରମାର          ରବଡ଼ି ଠେକଟା,
ଶଙ୍ଖୀ ବଲ୍ଲଉ,
(୨) ଗଡପ ଗଡପ          ହଡପ କରୁଛି
ସବୁ ରବଡ଼ି ।

---

(୧) ଅଠରଛନିଆ—କୌଣସି ବିପଦ ଆଶଙ୍କାରେ ଚଞ୍ଚଳ ଦୌଡ଼ି ଛୁଟିବା ।

(୨) ଗଡପ ଗଡପ—ତରତରରେ ଗିଳିବା ।
ରବଡ଼ି—ଦୁଧରେ ତିଆରି ସୁସ୍ୱାଦୁ ଖାଦ୍ୟ ।

ଦେଖଣ ବୋହୂକୁ ହୋଇଲା ଘୃନିଆ,
* ମାରଲା ଛୁଲଙ୍ଗ ଅଚରଛନିଆ,
ବମ୍ପ ଡାରେ ବୋହୂ ବୋଉଲେ ! ବୋଉଲେ !
ଗୁଣ୍ଡଲା ରଢ଼ ।
ଦାଉଢ଼ଲେ ଶାଶୁ ଝୁଣ୍ଟି ବୋହୂ ଦାହେଁ
ପଡ଼ଲେ ଗଡ ।
ଅଷ୍ଟା ଭଙ୍ଗ ବୋହୂ ରହିଲା ବାଗରେ
ଗୁମାନେ ବସି
ତୋହର ଦାନେକ ମୋହର ଦାନେ ଲେ !
ଅଲପେଇଷି ।
ଗୁମାନେ ବୋହୂଟା ରହିଗଲା ଛୁକ୍,
ସିହାଣୀ ବଲେଇ ରହିଲା ତରକ୍,
ଘୁରକ୍ ଦେଖିଲେ ରହିଲା ଫରକ (୧)
ପାହିଲା ନଗି,
ସାରା ଘର ଗଲା ଲୁଚ କାଳି ଖେଲେ
ମନ ଉଦାସ ।
ଘରେ ଗଉଗର ନୂଆ ବୋହୂ ରଖି
ଗୋରସ ଠେକା ।
କାଠ ପଟାଧର କବାଟ କୋଣରେ
ରହିଲା ଛୁକ ।
ତରକ୍ ଆସିଲା ସିହାଣୀ ବଲେଇ,
ଶୁନ୍‌ଶାନ୍ ଦେଖି ମୁହଁଟା ପୂରେଇ,
(୨) ସଡପ ଧଡପ ଖାଉଛି ଗୋରସ
ବାଜିଲା ବାଡ଼ି,

---

* ଛୁଲଙ୍ଗ—ଡିଆଁ ମାରିବା ।
(୧) ଫରକ—ଅଲଗ ରହିବା
(୨) ସଡପ୍ ସଡପ୍—ଶବ୍ଦ ହେଲା ଜଳ ହାପୁଡ଼ ହାପୁଡ଼ ଖାଇବା

✱ ଚିତ୍‌ପଟାଙ୍ଗ ହୋଇ    ପଡ଼ିଗଲ ତଳେ
ଦାନ୍ତ ନେସିଡ଼ି ।
ଦେଖି ଶାଶୁ ଆଖି    ଖୋସିଲେ କପାଳେ
† ହୋଇଲେ କାବା !
ବଳେଇ ହତ୍ୟା ଟି    ମହା ପାତକ ଲେ
କିସ କରିବା ?
ନିଧିଆ ମାଉସୀ, ହାବୁବୋଉ, ଟେମୀ
ଆସିଲେ ଦଉଡ଼ି ସାବ, ନେତ ହେମୀ
ଗାଆଁ ଠା ଯାକର    ମାଇପେ ସକଳେ
ହୋଇଲେ ଠୁଳ ।
ବଳେଇ ହତ୍ୟାଟି    ବ୍ରାହ୍ମଣ ହତ୍ୟାର
ସଙ୍ଗରେ ତୁଳ ।
“ଆହା ! ହା !    ବୋହୂର ମୁଣ୍ଡରେ ଲଗିଲ
କେଡ଼େ ପାତକ
ନ କଲେ ପ୍ରାଶ୍ଚିତ    ରହିବ ଅଳୁଆଁ
ଜୀବନ ଯାକ
ଡ଼ାକ ପଣ୍ଡିତଙ୍କୁ ବୁଝଗୋ ଯାବକ”!
ଡଆଁଇଲେ ଶାଶୁ ଟୋଲା ଟୋଲକ
ହଲଇ ଭୁଣ୍ଡିଲ    ଆସିଲେ ପଣ୍ଡିତେ
(୧) ଅନ୍ତଲ ପେଟ
ବଖାଣିଲେ ଦୋଷ    “ମହାକୁମ୍ଭୀପାକେ
ହୋଇବ ଭେଟ

---

✱ଚିତ୍‌ପଟାଙ୍ଗ—ସାମର୍ଥ୍ୟ ହୀନ ଭାବେ ଉପରମୁହାଁ ହୋଇ ପଡ଼ିବ ।
(୧) ଅନ୍ତଲ ପେଟ—ଅର୍ଥାତ “ଭୁଡ଼ିଲା” ଲୋକ, ସ୍ଥୂଳୋଦର ।
† କାବା—ଆଶ୍ଚର୍ଯ୍ୟାନ୍ୱିତ ।

କହିଲେ ଗମ୍ଭୀରେ "ବଲେଇ ଓଜନେ
ସୁନା ବଳେଇ
ଦାନ କଲେ ସିନା ଏ ମହା ପାତକ
ଯିବ ପଳେଇ
ଏ କଳି ଯୁଗରେ କେ ମାନୁଛି ପାଠ,
ଧରମ କରମ ସବୁ ହେଲା ଲାଠ,
ସାତ ଭରି ସୁନା ଆଣ ଗୋ, ବଳେଇ
ଆଣିବ ଗଢ଼ି,
ଦାନ ନେଇ ମୁହିଁ ବୋହୂକୁ ପାପରୁ
କରିବ ପାର ।
ମାସେ କାଳ ହେବ ଶିବ ମନ୍ଦିରେ ଗୋ
ଗାୟତ୍ରୀ ଜପ,
ହବିଷ୍ୟ ସଞ୍ଜାକୁ ତିନି ତିନି ଟଙ୍କା
ଦିନକୁ ଲେଖ,
ସାତ ସାତ ଜଣ ବ୍ରାହ୍ମଣ ଭୋଜନ,
କରାଉଥିବ ଗୋ ବୋହୂ ପ୍ରତିଦିନ,
ନକର ଭାବନା ତା ବଦଳେ ମୁହିଁ
ଜଣକ ଆସି,
କରିବ ଭୋଜନ ନିତ ଦିନ ବୋହୂ
ପାପ ବିନାଶି ।"
(୧) ପ୍ରାଚିତ ତାଲିକା ଶୁଣି ଶୁଣି ଶାଶୂ
ପିଟିଲେ ମଥା ।
"ବ୍ରାହ୍ମଣ କାତିଠା ବଡ଼ ଲୋଭୀ ଏକା
ଏ ସତ କଥା ।"

(୧) ପ୍ରାଚିତ— ପ୍ରାୟଶ୍ଚିତ୍ତ

ଉଠିଲେ ପଣ୍ଡିତେ ଗାମୁଛା ଝିଙ୍ଗାଡ଼ି,
ଧଇଲେ ସାଙ୍ଗିଟି ଗଟେ ଛୁଟା ବାଢ଼ି
ଥରୁ ଥର ଶାଶୁ    କହିଲେ "ପଣ୍ଡିତେ !
ଯାଉଛ କାହାଁ ?
ନିଅ ଭନା ଭର    ଖେତେ ଦାନ ବୋହୂ
ଥିବ ଅଛୁଁଆଁ !"
ଘଟେ ଡମ ଡମ    ବସିଲେ ପଣ୍ଡିତେ
ଆସନ ମାଡ଼ି
ଘୁନା ଡଉଲିଲେ    ମନ ଦୁଃଖେ ଶାଶୁ
ବାକସୁ କାଢ଼ି ।
ବଢାଇଲେ ହାତ ପଣ୍ଡିତ ଝିହାଡ଼ି
(୨) ମାରଲ ଚମ୍ପଟ୍ ସେ ଟଙ୍କା ଧରାଡ଼ି
ଚମକିଲେ ଶାଶୁ    ଖାଇଲେ ପଣ୍ଡିତେ
ନଖ ଦମ୍ଭୁଡ଼ା;
କହତ ପିଲଏ    କସ ଭାବ ଥିବେ
ପଣ୍ଡିତ ବୁଢା ?



---

(୨) ଚମ୍ପଟ—(ଗ୍ରାମ୍ୟଶବ୍ଦ) କୌଣସି ସ୍ଥାନରୁ ହଠାତ୍ ଗୋପନରେ ପଳାଇବା।

## "ଚକା ଚକା ଭଉଁରୀ"

— ୧ —

"ଚକା ଚକା ଭଉଁରୀ
ମାମୁଁ ଘର ଚଉଁରୀ"
ସେବ ନାନାର ବାଢ଼ା ଘରକୁ
ନୂଆଜା ମୋଡ଼ା ମଞ୍ଜରୀ ।
"ଚକା ଚକା ଭଉଁରୀ ।"
ଘରର ମଝି ଅନ୍ଧୁଡ଼ି ଶାଳ
ଶୁଖୁଆ ମାଛକୁ କାଞ୍ଜି ପଖାଳ
ବଳ ମଝି ଖଳାରେ ଆଣ୍ଠୁ ଛଳ ନଳା
ଦାଢ଼ିଆ ବୁଢ଼ା ଆସୁଛି ଖେଦ
ହାଡ଼ିଆ ଭାଇ ପଳା
ତାଧିନ ତାଧିନ ନାଚ ନାଚକା
ଆସେ ଦାମ ବାଉଶୀ
"ଚକା ଚକା ଭଉଁରୀ"
ବଣିଆ କୁକୁର ମୁହଁରେ ନିଶ
ଓଧେଇ ପୁଧେଇ କନ୍ଦୁଛି କସ
ଭବୁଛି ଝୁବୁରୁ କରିବୁ ନାହିଁ
ସବୁ ଚକୁଳି କରୁଛି ମାଇଁ

ମଞ୍ଚାତଳ ଧାନଲେ ପଶିଆ ମୂଷା ସାକ୍ଷୀ
ଡର ଚଢ଼ିଆ ଗାଉଛୁ ଗୀତ
ଯିବା ସଙ୍ଗାତ ଦେଖ୍
ଅଜା ବଜାରେ କରୁଛୁ ମଜା
ଆଣ୍ଡ ବଡ ଖାଉଁରୀ
"ଚକା ଚକା ଭଉଁରୀ"
"ଇଟି କଳି ମିଟିକଳି ପୁଟିଗଲା କାଇଁଚ"
ଗାଲେ ଦେବ ଚଟକଣ କିଏରେ ମୋତେ ଛୁଇଁଚ
ମାଇ ଭଲ ତଳ ହୋଇବୁ ନାହିଁ
ଠହକ-ଚାପର ଖାଇବୁ ନାହିଁ
ଟୁକୁରୁ ଟୁକୁରୁ ଚାଲିଲେ
ଫୁକୁରୁ ଫୁକୁରୁ ହସା
ରେବତୀ କାନରେ ସେବତୀ ଫୁଲ
ନିମ ଗଛ ତଳେ ବସା
ଲୋକା ଆମର ନିପଟ ବୋକା
ଗୋପା ଗାଲ ଗପୁରି
"ଚକା ଚକା ଭଉଁରୀ"
"ଗୁନି ଗୁଇଁ ବୁଟିକି ପିଠଉ ପାଣି ଝୁଁ"
କାଠ ବେଙ୍ଗ କଲା କଟର କଟର
ଟାଣି ଦେବ ତୋର ଚୂଟି
'ଆସ ସଙ୍ଗାତ ଗାଧୋଇ ଯିବା
ମାଧେଇ ପୋଖରୀ ପାଣି ପିଇବା
ପୋଖରୀ ମଝିରେ ଶିଳ ଲୋ
ନଈର ମଝି ଶିଳ

ଚଇତ ମାସର ଝାଙ୍କୁଆ ଆମ୍ବ
ଚୋଟି ସଳଖ ଗିଳ
ନନ୍ଦସେ ପାଣ ଗାଉଛୁ ଗୀତ
ଶାମ ବୁଢା ନାଉଗୀ
"ଚକା ଚକା ଭଉଁରୀ"

—୨—

ଚକା ଚକା ଭଉଁରୀ
ଖେଳିବ କଏ ଆସରେ ଧାଇଁ ସେବ ହେମି ଗଉଗୀ
"ଚକା ଚକା ଭଉଁରୀ"

କୁନୁକୁଟି ଚୁରୁକୁଟି ମୁରୁକୁଟି ବଇଠା
ପଖାଳି ଦାନ ନେବ କିଏ ରେ
ଖେଳ ଆଗରୁ କହୁଥା
ମିଠି ମିଠି କାଳୀ ଆଖି ଦାଣ୍ଡ ମଝି କଏରେ
ପିଠି ପିଠି ଗୋଡାଇବ ଖେଳିବ ନାହିଁ ପିଏରେ
କୁକୁଡା ମୁଣ୍ଡେ ଚୂଳ ଜେ
ଲଙ୍ଗଳ ମୁହେଁ ଶୁଷ
କଏ ଛୁଇଁବ ଛୁଇଁଲ୍ ମୋତେ
ମୁହଁରେ କାର ନାଶ
ଆଖି ପଲକେ ଛଲକ ପିବ
ଲଗାଇବ କାଉଁରୀ
"ଚକା ଚକା ଭଉଁରୀ"

( ୨୧ )

ପେଁକାଳି ବାଜେ ପିଁ-ପିଁ
ପବନ ବହେ ସିଁ ସିଁ
ଚହ୍ନିଆ କାନ୍ଦେ ଶଁ-ଗୁଁ
ବଇଁଶୀ ବାଜେ ପିଁ-ପି
"ଜହ୍ନି ଫୁଲ ଠୋ···ଠା
ଭାକୁଣ୍ଡ ଫୁଲ ଠୋ···ଠା"
ସନିଆ ଖାଇ ବଡ ଗୋଦରୀ
ପିଠିରେ ବନ୍ଧେ ଥୋଇଥା

ଖେଳିବ କିଏ ଆସରେ ପିଲେ
ଲୁଚ କାଲି ଆଉର
"ଚକ ଚକା ଭଉଁରୀ"
ଖେଳିଗଲା କଡ଼ କଡ଼ ମାରିଦେଲ ଦାନ
ଖେଳର ମଝି ଯେ ଭାଙ୍ଗିବ ମୋଡ଼ ହେବ କାନ
ଟମକ ଗରଜେ ଧୁଁ···ଧୁଁ···
କୋଇଲି ଡାକେ କୁହୁ···
ରେବତୀ ନାନୀ ଯାଉଛି ଲୁଚି
ପଛରୁ ଧାଇଁ ଛୁଁ
କଳା କଳା ବାଇଗଣ ଧଳା ଧଳା କଉଡ଼ି
ମୋ ସାଥିରେ ଖେଳିବ ଯିଏ ମାରିଦେବ ଘଉଡ଼ି
ଆଜିର ଖେଳ ଏତିକି ଥାଉ
କାଲି ଖେଳିବା ଆଉରି
"ଚକା ଚକା ଭଉଁରୀ ।"

—ଃଠଃ—

## "ରହିପାରେ କି ମୁଁ ଏଡ଼କି ଦୂରେ ?"

ବଙ୍ଗଳା ବକ୍ଷର ଚମ୍ପକ ସୁନ୍ଦର
ସହର ଚେତ୍ତ,
ଅମାନିଆ ମନ ଧାଇଁଯାଏ କେଉଁ
ଶରଧା ଫେନ୍ତ ।

ବସି ଦିଗନ୍ତର ଜଳପରୀ ରଥେ,
ବୁଲି ଆସେ ମୋର ଗାଆଁ ପଥେ ପଥେ ।
ଗାଆଁଟି ମୋହର ସରଗ ସିରୀରେ
ସଚେଶ ସିରୀ
ଗାଆଁର ପିଲାକୁଁ ଗାଆଁଟି ମୋହର ସପନ ପୁରୀ ।
ଗାଆଁ ଝିଅଙ୍କର ଲଜ ସରସର
କଅଁଳ ଚୀର,
ଚରଳ ଅଥଳ ପରାଣ ମୋହର
ପରଶେ ଧୀର ।
ମୁକୁଆ ଝିଅର ସଙ୍ଗୀତ ଲହରୀ,
କଅଁଳ ପବନ ତାଳେ ତାଳେ ଫେରେ,

ଝଲକେ ଝଲକେ    ଆସଇ ଭାସିରେ
ଆସଇ ଭାସି,
ସେ ଗୀତ ଲହରୀ    ଢାଳେ ମୋର କାନେ
ପିୟୂଷ ରାଶି ।
ଗାଈଆଳ ପିଲା    ମଧୁର ମୁରଲୀ
ନଈ ସେ ପାରି,
କଳ କଳ ତାନେ    ମିଶାଇ ବଜାଏ
ମଧୁର ସ୍ୱରେ ।
କଳସୀ କାଖରେ ସରଳା ବାଳିକା
ଅପଠନ ଶିଖି ଚାଲିଯାଏ ଫିକା,
ପଲାଶ ଫୁଲିଆ    ନାଲି ପାଦ ତାର
ଯାଏ ଥମକି ।
ତରଳ ଗୃହିଣୀ    ଖେଳେ ଏଣେ ତେଣେ
ହୁଆ ଚମକି
ଝଙ୍କା ଅମ୍ବଗଛ    କୁଞ୍ଜ କାନନ
କୁହୁ କାକଳୀ,
ଢଳଢଳ ବସନ୍ତ    କଙ୍କଳ ପାଟିର
ଗୀତ ଲହରୀ,
କାଆ କାଆ ରବ ଡାମରା କାଉରେ,
ଦଶଆ ଧାଡ଼ିର ବାଉଁଶ କାହ୍ନୁଁରେ,
କହିଯାଏ ବସି    ଚଉଦ ମୂଳେରେ
ଚଉଦ ମୂଳେ,
ଲେଉଟଣି ପାଖର    ଢୁମୁରା ଢୁରଣି
ମନ ଉଛୁଳେ ।

ଗାଆଁ ଗୃହାଳୀର ଗୃହ ଅବଧାନେ
ଧମାନ ସୁରେ,
ତାଳ ଦେଉଥାନ୍ତ ପଣକଆ ଗୀତ
ମାନସପୁରେ
ଚନ୍ଦନୀ ରାତରେ ସରଳା କୁମାରୀ
(୧)ବରଆ ସଙ୍ଗୀତ ଦେଉଥାନ୍ତି ତାଳ
ଗାଆଁ ପିଲଙ୍କର ବୋହୁ ଚୋର ଗୀତ
ପବନେ ଦୂରେ ?
ଛାଡ଼ି ସେ ଶରଧା ରହିପାରେ କି ମୁଁ
ଏଡ଼କି ଦୂରେ
ବୁଢ଼ୀ ମାଆ କୋଳେ ଅବୁଝାଣ ପିଲ
କରୁଛି ଅଳ ।
କହୁଛି ବୁଢ଼ୀମା ଝୁମ୍ପି ଗପ କେତେ
ମନରୁ ଗଢ଼ ।
ବୁଢ଼ୀ ଅସୁରୁଣୀ କି କୁହୁକ ପୁରୀ,
ସାଧବ ପୁଅର ରଜାଝିଅ ଚୋର,
ସେ କାହାଣୀ ଶୁଣି ବାସନା ଗୁଡ଼ରେ
ବାସନା ଗୁଡ଼ ।
ରହିପାରେ କି ମୁଁ ଏ ଦୂର ଗାଇଁକେ
ଶରଧା ମାର ?

---

(୧) ବରଆ—କଳାହାଣ୍ଡିର ଗ୍ରାମ୍ୟ କୁମାରୀଙ୍କ ସାମୂହିକ ଗାନ

କୁନି ଭଉଣୀଟି ଝିଇ ଝିଇ କନ୍ଦି
ଓଟାରି ଜାନି,
ଦୂରୁ ଆସୁଥିବ ମୂରି ପଟେ ମୋର
ବୋଲ ନ ମାନି
କୁନା ମନୁ ସବୁ ଧୂଳିଆ ଖୋଲ( ୨ ) ରେ
ମାଡ ଯାଉଥିବେ ଚକା ଭଉଁରିରେ ।
ଖଟେଣ୍ଡି ଚୂଳୁ ଦେଖି ଦାଢ଼ିଆ ବୁଢାର
ଟୁଗା ଫଟେଢ଼ି
(୩) ଅତର ଗୁଣିଆ ଫଳାଇ ପିବେ ଟେ୍ର
କୁହାଟ ଗୁଣ୍ଡି ।
ଭାଲି କହି କହି ଅନ୍ଧାରି ଘଡିରେ
ଚଉକି ଦାରି,
"ବନ୍ତିବାଲେ..."ବୋଲି ଗୁଣ୍ଡୁଥିବେ ଡାକ
ବାରକୁ ବାର ।
ଅବୁଝା ପିଲଏ ସେ ଡାକେ ଚମକି,
ମାଆ ପେଟତଳେ ହେବେ ଜାକ ଜୁକି,
ବାଡ଼ି ଗାଡଆରୁ ଗାଉଥିବ ବେଙ୍ଗ
"କଟର କେଏଁ"
ବିଲ ଆର ପାରି ତୁଳସୀ ବଣରୁ
ଶୁଭୁଥିବ "ଭେଏଁ...ଭେଏଁ..." ।
ରନ୍ଧଥାନ୍ତା ଯେବେ ଦଓଟି ଭେଣାରେ
ଦାଣ୍ଡରେ ମୋର ।

---

୨ ଖୋଳ—ଗ୍ରାମ୍ୟ ଦାଣ୍ଡ

୩ ଅତରଗୁଣିଆ—ଭପୁବହୁଳା

ଡେଇଁ ଗିରିବନ                ତଟିନୀ ଝରଣା

ବିପିନ ଘୋର ।

ବଙ୍ଗୁଳି ବେଟରେ ଯାଆନ୍ତି ମୁଁ ଉଡ଼ି,

ସିଧା ସଳଖରେ ବାଟକୁ ନ ଛାଡ଼ି ।

ପିଲଙ୍କ ମଝିରେ                ଅଧ ନିଦ୍ରାରେ

ମାରନ୍ତି ଡିଆଁ

କାବା କରି ଦେଇ                ସଭିଙ୍କୁ, କହନ୍ତୁ

"ରହନ୍ତି କିଆଁ ?"

—୧୦୫—

## —ଫୁଲ ବଉଳବେଣୀ—

କୁଆଁର ପୁନେଇଁ ଜହ୍ନଲୋ ଫୁଲ ବଉଳବେଣୀ
ହାତରେ ନାଇଁନ କାଣିକଉଡ଼ି ଲୋ
ଏବାର ଚଢ଼ିବା ମନଲୋ
ଫୁଲ ବଉଳବେଣୀ ।
ଝିଙ୍କ ଦୋଲ ଦୁଲ ଦୁଲଲୋ ଫୁଲ ବଉଳବେଣୀ
ଖାଇ ଆଣିଦେବେ କଟକ ସହରୁ
ତାରକସି କାନଫୁଲ ଲୋ
ଫୁଲ ବଉଳବେଣୀ ।
ଗୁଳରେ ବସିଲ କୁଆଲୋ ଫୁଲ ବଉଳବେଣୀ
ଗୁଳ୍‌ରୋ ସଙ୍ଗାନ ପାଠଢ଼େ ଯିବା
ଗଢ଼ବା ଦେଶକୁ ନୂଆ ଲୋ
ଫୁଲ ବଉଳବେଣୀ
ଦାନରେ ମାଲଲି ହୁଣ୍ଡ ଲୋ ଫୁଲ ବଉଳବେଣୀ
ଭରକା ନାଥିଲେ ବହ୍ନିଯିବ ସିନା
କହ୍ନଣିକୁ ନେଢ଼ ଗୁଡ଼ ଲୋ
ଫୁଲ ବଉଳବେଣୀ ।
ଦଶରା ମାମ୍ବର ବଢ଼ ଲୋ ଫୁଲ ବଉଳବେଣୀ
କଲ୍ଲମାମୁଁ ଘରେ କୁଣିଆ ହୋଇବା
ଉଭଙ୍କଟ ଖାନରେ ଚଢ଼ି ଛିଲ
ଫୁଲ ବଉଳବେଣୀ ।

ଆଷାଢେ ଫୁଟିଲ କିଆଲୋ ଫୁଲ ବଉଳବେଣୀ
ଇଧନୁ ଅରୁଣା ଭଉଣୀ ଆମର
ଭରନ୍ତା କାହାକୁ କିଆଁ ଲୋ
ଫୁଲ ବଉଳବେଣୀ

ନଢନ୍ନୁଆ ପଢର ଟିକିଲେ ଫୁଲ ବଉଳବେଣୀ
ଆନେମଣିକା ଛୁଟିଲେ ହୁଡ଼ କରିବା ଲେ
ନୂଆଁ ନୂଆଁ କଥା ଶିଖି ଲୋ
ଫୁଲ ବଉଳବେଣୀ ।

ପଉଷରେ ବଡ ଶୀତ ଲୋ ଫୁଲ ବଉଳବେଣୀ
ଦଉଳ ଆମର ବର୍ଷରେ ପଢ଼ିବ
ଗାଇବା ମଙ୍ଗଳ ଗୀତ ଲୋ
ଫୁଲ ବଉଳବେଣୀ ।

ଫଗୁଣରେ ଫଗୁଖେଳ ଲୋ ଫୁଲ ବଉଳବେଣୀ
ବାପା ଯାଉଛନ୍ତି କୋଣାରକ ଦେଖି
ଆଣିବେ ବାଇନା ଢୋଲ ଲୋ
ଫୁଲ ବଉଳବେଣୀ

ଜ୍ୱଳିଲ ଅରନି ଚକି ଲୋ ଫୁଲ ବଉଳବେଣୀ
ଝିବକୁଦ ଉଳେ ନଳା ପଡ଼ିଛନ୍ତି ଲୋ
ଘୂରୁଛି ବିଜୁଳି ଚକା ଲୋ
ଫୁଲ ବଉଳବେଣୀ

ଚଇତେ ଫୁଟିଲ ମଲ୍ଲୀ ଲୋ ଫୁଲ ବଉଳବେଣୀ
ଇଂରାଜୀ ପାଠ ପଢ଼ିଲେ ବଉଳ
ଦେଖିପିବୁ ନୂଆ ଦାଣ୍ଡ ଲୋ
ଫୁଲ ବଉଳବେଣୀ

ଢେଙ୍କାନାଳେ ଲପିଲାସ ଲୋ ଫୁଲ ବଉଳବେଣୀ
ଗୃଲଗୋ ବଉଳ ଦେଉଳ ଦେଖିବା
ଲଗାଇବା ଖଗ୍ରମାସ ଲେ
ଫୁଲ ବଉଳବେଣୀ
ସାତ କୋଶୀ ଗଣ୍ଡ ଶୀଳ ଲୋ ଫୁଲ ବଉଳବେଣୀ
ନାଆରେ ବହିବୁ ତରଙ୍ଗ ସଙ୍ଗାଛି
ଠାଣିନେବ ଘଡ଼ିଆଳ ଲୋ
ଫୁଲ ବଉଳବେଣୀ
ସମ୍ବଲପୁରିଆ ମଠା ଲୋ ଫୁଲ ବଉଳବେଣୀ
ବରଗଡ଼ ହାଟେ କିଣିବୁ ସଙ୍ଗାତ
କଥାକୁ ନ ମଣ ଥଟ୍ଟା ଲୋ
ଫୁଲ ବଉଳବେଣୀ
କଣ୍ଟିଲୋ ଗାଆଁର କଂସା ଲୋ ଫୁଲ ବଉଳ ବେଣୀ
ଜଳେଶ୍ବରୁ ଆଣି ସପ ମଗିଣା ଲୋ
ଖରାଦିନେ ହେବ ବସା ଲୋ
ଫୁଲ ବଉଳବେଣୀ
ବରମ ପୁରିଆ ପାଟ ଲୋ ଫୁଲ ବଉଳବେଣୀ
ଉତ୍ସବର ହେଲଣି ଫୁଲ ଲୋ ବଉଳ
ବେଗେ ପଡ଼ିଯିବା ପାଠ ଲୋ
ଫୁଲ ବଉଳବେଣୀ ।

—*—

# ନୂଆ ଭାରତର ଝିଅ

ମୁଁ, ନୂଆ-ଭାରତର ଝିଅ
ଜାଣିଛକି ମୋର ନାଆଁ ?
ଯାଦବ ନୁହେଁକି ମାଧବ ନୁହେଁ ମୁଁ
ଆଗାମୀ ଯୁଗର ବୁଅ (୧)
ମୁଁ, ନୂଆ ଭାରତର ଝିଅ ।

କସ୍ତୁରବାଈ ମୋ ମାଉସୀ
ବିଜୟଲକ୍ଷ୍ମୀ ପିଉସୀ
ଇନ୍ଦିରା, ଅରୁଣା ଆଶା ନାନୀ-ମୋର
ସ୍ମୃତି ମୋହର ନାଆଁ
ମୁଁ ନୂଆ ଭାରତର ଝିଅ ।

ପରୀ ରାଇଜେ ମୁଁ ଛୁଟିବି
ସୁନାର ପସରା ଲୁଟିବି
ଶହ ଶହ କରି କେତେ ହୀରାକୁଦ
ଗଢ଼ିବ ଛୁଆଙ୍କୁ ତୁମ୍ଭ
ମୁଁ, ନୂଆ ଭାରତର ଝିଅ ।

---

(୧) ବୁଅ—ବାପା

ଏଭରେଷ୍ଟ ଚୂଳେ ଚଢ଼ିବ,
ଚୀନ ସଇନଙ୍କୁ ତଡ଼ିବ
ପଞ୍ଚଶୀଳର ଶାନ୍ତି ନୀତିରେ
ଗଢ଼ିବ ଦେଶକୁ ନୂଆ ।
ମୁଁ, ନୂଆ ଭାରତର ଛୁଆ ।

ପବନ ଦୋଳରେ ଝୁଲିବ,
ବିଜୁଳି ସାଥିରେ ଖେଳିବ,
ଲହରୀ-ଗୀତରେ ମିଶାଇବ ସୁର୍
ଦେଖିବ ଜଗତେ ନୂଆ ।
ମୁଁ, ନୂଆ ଭାରତର ଛୁଆ ।

ରକେଟ୍ ଯାନରେ ଉଠିବ
ସୂର୍ଯ୍ୟଲୋକକୁ ଛୁଟିବ
ଚନ୍ଦ୍ରମଣ୍ଡଳୁ ଅମୃତ ଲୁଟି ।
ଗଢ଼ିବ ଦେଶକୁ ନୂଆ ।
ମୁଁ, ନୂଆ ଭାରତର ଛୁଆ ।

ଘରେ ଘରେ ମୁହିଁ ବୁଲିବ,
ଶକ୍ତି ମନ୍ତ୍ର ଭରିବ
ଗାନ୍ଧୀ ନେହରୁ ପଟେଲ୍ ସୁବାସ
ଗଢ଼ିବ ଗାଆଁକୁ ଗାଆଁ ।
ମୁଁ, ନୂଆ ଭାରତର ଛୁଆ ।

ଆମେରିକା ହେବ କାବା !
ରୁଷିଆ କହିବ ବାଃ ବା !
ବିଲାତ କହିବ ଧନ୍ୟରେ ଭୁହ
ଅଜବ୍ ଦେଶର ଛୁଆ ।
ମୁଁ ; ନୂଆ ଭାରତର ଛୁଆ ।

—:O:—

# "ଗମ୍ଭୀରୀ ଭିତରେ ଥାଆ"

କାଳୀ କୁଟି କୁଟି ଅନ୍ଧାର ଘୋଟିଲେ !
ଯାଇଁ ଯାଇଁ ବନ୍ଧେ ବାଆ
ଢେଙ୍କାପୁଅ ଛକ ରହନ୍ତି ଡିଅଁଲେ ।
"ଗମ୍ଭୀରୀ ଭିତରେ ଥାଆ"
ସଜନା ଗଛରେ ପାରଡ଼ା ଫେକ ହେଲେ ।
ପଣାଣି ଚୁଲିରେ ଜୁଇ,
ବାପା ଯାଇଛନ୍ତି ବାଙ୍କ ବନ୍ଦରରେ
ଦାଳ ଚଣୁଅ ଆ ଚୂଡ଼ା ।
ଝମ୍ପୁରୁ ଝମ୍ପୁରୁ ମେଘ ବରଷେ ଲୋ ।
ନିଶା ଡାକେ ଝାଇଁ ଝାଇଁ
ପସର ଫାଟିଲେ ଲବଙ୍ଗ ଲତାଲୋ
ଘରେ ବାହୁଡ଼ିବେ ଭାଇ ।
ଶଙ୍ଖା ଖେଳର ଢମ ଢମପା ଲୋ ।
ମଞ୍ଜାତଳ ଧାନ ଚେପୁ,
ସାତ ଭାଇଭଲେ ଗୋଲେଇ ଡିଅଁଲେ ।
ଅଳପ କଥାକୁ ରୁଷୁ ।
ମାଗୁର ମାଛର ଗୋଲରେ କଣ୍ଟାଲେ,
ଦ ନୁଆ ମୁହଁରେ ହସ ।
ସତୀ ସୀତା ସଙ୍ଗେ ଲବଙ୍ଗ ଲତାଲେ,
ରାମ ଗଲେ ବନବାସ ।